# ଆମ
# ହାତର କାହାଣୀ

ବିନୟକୃଷ୍ଣ ପଟ୍ଟନାୟକ



ଖୁସିରେ ପଢ଼ିବା ଅଭିଯାନ

ଭାରତ ଜ୍ଞାନ ବିଜ୍ଞାନ ସମିତି

# ଆମ ହାତର କାହାଣୀ


ରଚନା ବିନୟକୃଷ୍ଣ ପଟ୍ଟନାୟକ

ଆଧାର 'ଚକ୍‌ମକ୍'

ଅଙ୍କନ ଅସିତ୍ ଦାସ

ପ୍ରକାଶକ ଭାରତ ଜ୍ଞାନ ବିଜ୍ଞାନ ସମିତି,

ସି-୨, ହାଉସିଂ ବୋର୍ଡ଼ କଲୋନୀ,

ବରମୁଣ୍ଡା, ଭୁବନେଶ୍ୱର - ୭୫୧ ୦୦୩

ଫୋନ୍ : (୦୬୭୪) ୪୭୦୮୯୧

ଅଙ୍ଗସଜ୍ଜା : ପାୟୋନିୟର କମ୍ପ୍ୟୁଟର ସର୍ଭିସେସ୍

ଭୁବନେଶ୍ୱର

ମୁଦ୍ରଣ

ମୂଲ୍ୟ : ତିନି ଟଙ୍କା ମାତ୍ର

ପ୍ରକାଶ କାଳ : ଜାନୁଆରୀ ପହିଲା ୧୯୯୭


*ଏହି ପୁସ୍ତିକାଟି ଓଡ଼ିଶାରେ 'ଖୁସିରେ ପଢ଼ିବା ଅଭିଯାନ' (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଲୋକଙ୍କ ମଧ୍ୟରେ ପଠନ ପ୍ରତି ରୁଚି ବଢ଼ାଇବା ଓ ଗାଁ ଗହଳିରେ ଏକ ପାଠାଗାର ଅଭିଯାନ କରିବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।*


★ The Story of our Hands ★ Writer - Binaya Krushna Pattanayak ★ Reference - Chakmak ★ Illustrator - Asit Das ★ Published by - B.G.V.S., Orissa, for Jan Vachan Andolan ★ Price - Rs. 3.00 ★ Publication period - 1st January 1997

# ମୁଁ ହାତ କହୁଛି.......

ହଁ ବନ୍ଧୁଗଣ । ମୁଁ ଆପଣଙ୍କ ହାତ କହୁଛି । ହଁ....ହଁ....ଆପଣଙ୍କ ହାତ । ମତେ ଦେଖିବା ପାଇଁ ମୁଣ୍ଡ ତଳକୁ କରୁଛନ୍ତି ନା ? ମୁଣ୍ଡ ନୁଆଁଇବା ଦରକାର ନାହିଁ । ଏଇ ମୁଁ ଆସିଗଲି....ଆପଣଙ୍କ ଆଖି ସାମନାକୁ । ଏଥର ମତେ ଦେଖିପାରୁଛନ୍ତି ତ ? ଧରି ନିଅନ୍ତୁ ପାପୁଲିଟା ମୋର ମୁହଁ । ଆଉ ଆଙ୍ଗୁଠି ଗୁଡ଼ାକ ମୋ ବାଳ । ଏଥର ମୁଁ ଗୋଟିଏ ମଣିଷ ପରି ଦିଶିଲିଣି ନା ? ଆପଣ ଚାହିଁଲେ ପାପୁଲି ଉପରେ ମୋ ପାଇଁ ଆଖି, ବାଳ, ପାଟି ଆଦି ବି ଆଙ୍କି ଦେଇ ପାରିବେ । ମୋ ସାଙ୍ଗରେ ଆପଣ କଥା ହେବେ ତ ?



ମୁଁ ଜାଣେନା- ଆପଣଙ୍କୁ ଯଦି ପଚରା ଯାଏ, ଆପଣଙ୍କ ଦେହର ସବୁଠୁ ଗୁରୁତ୍ୱପୂର୍ଣ ଅଙ୍ଗ କେଉଁଟା ? ଆପଣ ହୁଏତ ଅଡୁଆରେ ପଡ଼ିଯିବେ । ଆଚ୍ଛା....ଛାଡ଼ନ୍ତୁ ସେ କଥା । ଏହାର ଉତ୍ତର ଦେବା ଏତେ ସହଜ ନୁହେଁ । କାରଣ ଆପଣ ବୋଧେ ଏ ବିଷୟରେ କେବେ ଭାବି ନଥିବେ । ଆପଣ ମୋ କଥା ବିଚାରକୁ ନେବେ କି ନାହିଁ ତା' ମୁଁ ଜାଣେନା । ଆଜି ମୁଁ ଆପଣଙ୍କୁ ମୋ କାହାଣୀଟି ଶୁଣାଇବି । ସେଥିରୁ ଆପଣ ଜାଣି ପାରିବେ ମୋ ଗୁରୁତ୍ୱଟି କେତେ । ଆପଣ ଦେଖିବେ, ଆପଣଙ୍କ ଦେହର ଯେ କୌଣସି ଅଙ୍ଗ ଠାରୁ ମୋ ଗୁରୁତ୍ୱ କମ୍ ନୁହେଁ ।

ଆମେ ଦୁଇ ହାତ ମିଶି କ'ଣ କ'ଣ କରୁ ? ଏହାର ତାଲିକାଟିଏ ବନାଇବା କି ? ଆପଣ ହୁଏତ ସାଙ୍ଗେ ସାଙ୍ଗେ କହି ପକାଇବେ- ଆରେ ବାପ୍‌ରେ । କେତେ ଲେଖିବି ? ଯେତେ ଲେଖିଲେ ବି ସରିବନି ! କଳାକାର ଚିତ୍ର ଆଙ୍କୁଛି । ପାଇକ ହାତରେ ଖଣ୍ଡା ଧରି ଯୁଦ୍ଧ କରୁଛି । ଗାଈଆଳ ଟୋକାଟି ବଇଁଶୀ ବଜାଉଛି । କୁନି ବାଲିରେ ଘର ଗଢୁଛି । ଲବଙ୍ଗ ହାତରେ ସିଲେଇ କରୁଛି । ମା' ରୋଷେଇ କରୁଛନ୍ତି । ଟୁଟୁ ଅପା କ'ଣ ଲେଖୁଛି । ଭାଇ ଗଛରେ ପାଣି ଦେଉଛନ୍ତି । କୁଶିଆ ଦା' ଜମି ଚଷୁଛନ୍ତି । ଭାବିଲେ, ଦୁନିଆରେ କେଉଁ ମେସିନ୍ ବି ଏତେ କାମ କରିପାରିବେ ନାହିଁ । କାମର ତାଲିକା କଲେ ବହିର ଲେଖାଟି ସରିବ ନାହିଁ । ତେଣୁ ଆମେ ମୂଳ କଥାକୁ ଫେରିଆସିବା ।

ଆପଣ ତ ଦିନକ ଭିତରେ ଖାଲି କାମ ଆଉ କାମ କରି ଚାଲି ଥାଆନ୍ତି । କିନ୍ତୁ ଆମ ପାଇଁ ଆପଣଙ୍କୁ କେବେ ବି କିଛି ଚିନ୍ତା କରିବାକୁ ପଡ଼େ ନାହିଁ । ଆମେ ଦୁଇ ଜଣ କେବେ ବି ଥକୁନା । ଆପଣ ଯାହା ଚାହାନ୍ତି, ଆମେ ସେ ଅନୁସାରେ ତିଆର ହୋଇଯାଉ । ଆପଣ ବେଳେ ବେଳେ କହି ପକାଇଥିବେ ବା ଶୁଣିଥିବେ - ଓହୋ, ମୋ ପାଦ ଥକି ଗଲାଣି । ମୋ କାନ୍ଧ ବିନ୍ଧିଲାଣି; କିନ୍ତୁ ଏମିତି ବୋଧେ କେବେ କହି ନଥିବେ- ମୋ ହାତ ଥକି

ଗଲାଣି । କିନ୍ତୁ ଏହାର ଅର୍ଥ ନୁହେଁ, ଆମେ କାମ କମ୍ କରୁ । ଆପଣଙ୍କ ପାଇଁ ଆମେ ଜୀବନ ସାରା ଅସରନ୍ତି କାମ କରି ଚାଲିଥାଉ ।




ଆପଣ ଜନ୍ମ ହେଲା ବେଳକୁ ମନେ ପକାଇପାରିବେ ? ନା , ସେ କଥା ଆପଣଙ୍କର କୁଅଡ଼େ ମନେ ଥିବ ? ସେତେବେଳେ ତ ଆପଣ ହାତ କ'ଣ ଜାଣି ନଥିଲେ । କିନ୍ତୁ କଅଁଳା ଛୁଆକୁ ଦେଖନ୍ତୁ । ସେ ତା'ର ଦୁଇ ହାତକୁ କିପରି ହଲାଇବାରେ ଲାଗିଛି । ସେବେଠୁ ଏବେ ଯାଏଁ ଆମେମାନେ କ'ଣ ନା କ'ଣ କରିଚାଲିଛୁ । ବୁଢ଼ାବୁଢ଼ୀଙ୍କୁ ବି ଦେଖନ୍ତୁ । ସେମାନେ ଶେଷ ଯାଏଁ ତାଙ୍କର ହାତକୁ ଚଳାଇଥାନ୍ତି ।

କିନ୍ତୁ ସେ ଶୋଇଲା ଲୋକଟିକୁ ଦେଖିଲେ । ସେତେବେଳେ ହିଁ ମତେ କିଛିଟା ବିଶ୍ରାମ ମିଳିଥାଏ । କିନ୍ତୁ ଦେହରେ ମଶାଟିଏ ବସିଲେ ବା କଡ଼ ଲେଉଟାଇଲା ବେଳେ ମତେ ହିଁ କାମ କରିବାକୁ ପଡ଼େ । ଆପଣ ଗୋଟିଏ ମଜା ହିସାବ ଶୁଣିବେ ? ଆମେ ହାତମାନେ ହିସାବ ରଖିଛୁ - ଆପଣ ମଣିଷମାନେ ପୂରା ଜୀବନକାଳ ଭିତରେ ପ୍ରାୟ ତିନି କୋ...ଟି ଥର ମୋ ଆଙ୍ଗୁଠି ଗୁଡ଼ିକୁ ମୁଜନ୍ତି ଓ ଖୋଲନ୍ତି ।

ଏତେ ରକମର କାମ ମୁଁ କରେ କେମିତି ? ଆପଣ ଜାଣିଲେ ଖୁସି ହେବେ ଯେ, ଏଥିପାଇଁ ମୋ ଗଠନଟି ବି ବିଶେଷ ଧରଣର ହୋଇଛି । ଏହା ଅଦ୍‌ଭୁତ ରକମର । ମୋ ଭିତରେ ମାଂସପେଶୀ, ଶିରା ଓ ତନ୍ତୁଗୁଡ଼ିକ ଜାଲ ପରି ବିଛାଇ ହୋଇ ରହିଛି । ତେଣୁ ମୋ କଚି, ଆଙ୍ଗୁଠିଗୁଡ଼ିକୁ ମୁଁ ବେଶ୍ ସୁବିଧାରେ କଡ଼କୁ ବୁଲାଇପାରେ ଓ ଆଗପଛ କରିପାରେ । ଏ ସବୁକୁ ସୁବିଧାରେ କାମରେ ଲଗାଇବା ପାଇଁ ମୋ ଦେହରେ ସତେଇଶଟି ଛୋଟ ଛୋଟ ହାଡ଼ ଖଞ୍ଜି ହୋଇ ରହିଛି । ଏହା ଭିତରୁ କଚିରେ ୫ଟି, ପାପୁଲିରେ ୮ଟି ଓ ଆଙ୍ଗୁଠିରେ ୧୪ଟି ହାଡ଼ ରହିଛି ।

ବାହାରୁ ଦେଖିଲେ ଏହା ଜଣାପଡ଼ିବ ନାହିଁ । ତେଣୁ ଆପଣ ଛବିଟିକୁ ଦେଖିନିଅନ୍ତୁ । ଏଥିରେ ମୋର କଙ୍କାଳଟିକୁ ସ୍ପଷ୍ଟ ଭାବେ ଦେଖାଯାଇଛି । ଏକ୍‌ସ୍‌ରେ ଛବିରୁ ଆପଣ ମୋର ଅସଲ ରୂପକୁ ବି ଦେଖିପାରିବେ । ଆମ ଦୁଇ ହାତର ସବୁ ହାଡ଼କୁ ମିଶାଇଲେ ସବୁଦାୟ ୫୪ଟି ହାଡ଼ ହୁଏ । ଆପଣଙ୍କ ଦେହରେ ୨୦୬ଟି ହାଡ଼ ଅଛି । ଏହା ଭିତରୁ ଆମ ସଂଖ୍ୟା ହିଁ ଚଉଠେରୁ ବେଶୀ ହେଉଛି ।

ମୋର ସାଥି କର୍ମୀମାନଙ୍କୁ ତ ଆପଣ ସବୁବେଳେ କାମରେ ଲଗାଉଛନ୍ତି । କିନ୍ତୁ ଏମାନଙ୍କୁ ଚିହ୍ନିଛନ୍ତି ? ଆସନ୍ତୁ ମୁଁ ଏମାନଙ୍କ ସହ ଆପଣଙ୍କୁ ପରିଚିତ କରାଇ ଦିଏ । ଏମାନଙ୍କ ମଧ୍ୟରୁ ସବୁଠୁ ମୋଟା ସାଥି ହେଲେ ବୁଢ଼ା ଆଙ୍ଗୁଠି । ତାଙ୍କ ପାଖରେ ଠିଆ ହୋଇଛନ୍ତି ଆଉ ଚାରି ଆଙ୍ଗୁଠି । ଏ ସମସ୍ତଙ୍କୁ ହଲାଇବା ପାଇଁ ଭିତରେ ବିଶେଷ ଧରଣର ମାଂସପେଶୀ ଓ ତନ୍ତୁ ରହିଛି ।

ଏମାନେ କିପରି କାମ କରନ୍ତି, ତା ଆପଣ ଦେଖିବାକୁ ଚାହୁଁଛନ୍ତି ? ଚାଲନ୍ତୁ ଏଥିପାଇଁ ମଜାଦାର ପରଖଟିଏ କରିବା । ମତେ ଆପଣ ଟେବୁଲ୍ ବା ଚଟାଣ ଉପରେ ରଖନ୍ତୁ, ଯେପରି ମୋ ପାପୁଲି ଉପରକୁ ମୁହାଁଇବ । ଆପଣ ଆଙ୍ଗୁଠିଗୁଡ଼ିକୁ ଗୋଟିଏ ପରେ ଗୋଟିଏ ଆଗପଛ କରନ୍ତୁ । ସେ



ସମୟରେ ଆପଣ ନିଜ ପେଶୀ ଓ ଶିର୍‌ଗୁଡ଼ିକୁ ଭଲ କରି ଦେଖନ୍ତୁ । ଏମାନେ ହଲିଲା ପରି ଜଣାପଡୁଛନ୍ତି କି ? ଏଥର ହାତକୁ ଓଲଟାଇ ଦେଇ ଆଗପଛ କରନ୍ତୁ । କିଛି ଫରକ ଦେଖିଲେ ?

ଏହି କାମଟିରୁ ଆପଣ ମୋ ସହକର୍ମୀମାନଙ୍କ ବିଷୟରେ ଅଳ୍ପ ଧାରଣା ପାଇପାରିଥିବେ । ଏ ସମସ୍ତଙ୍କ ଭିତରେ ସବୁଠୁ କାମିକା-ବୁଢ଼ା ଆଙ୍ଗୁଠି । ନାଁ ଟା ସିନା ବୁଢ଼ା । କିନ୍ତୁ କାମରେ ସେ ସବୁଠୁ ପୋଖତ ଓ ଯୁଆନ । ଆପଣ ତ ଏକଲବ୍ୟ କାହାଣୀ ଜାଣିଥିବେ । ମନେ ପକାନ୍ତୁ....ସେହି ବିଖ୍ୟାତ କାହାଣୀଟିର ନାୟକ କିଏ ? ଏକଲବ୍ୟ ନା' ଦ୍ରୋଣ ? ସେ ହେଉଛି ଏକଲବ୍ୟର ବୁଢ଼ା ଆଙ୍ଗୁଠି । ଏହା ବଳରେ ଏକଲବ୍ୟ ସବୁଠୁ ଦକ୍ଷ ଧନୁଚାଳକ ହୋଇପାରିଥିଲା । କିନ୍ତୁ ଗୁରୁ ଦ୍ରୋଣଙ୍କ କପଟ ଯୋଗୁଁ ସେ ନିଜ ବୁଢ଼ା ଆଙ୍ଗୁଠିଟି ଦାନ କରିଦେଲା । ଏହା ହିଁ ତାକୁ ଅସହାୟ କରିଦେଲା ।

ଏହା ଖାଲି ଏକଲବ୍ୟର ବୁଢ଼ା ଆଙ୍ଗୁଠି ନୁହେଁ । ଏହା ସମସ୍ତଙ୍କର ବୁଢ଼ା ଆଙ୍ଗୁଠିର ମହାନ କଥା । ଭାବିଲେ ଦେଖି, ଆପଣଙ୍କ ବୁଢ଼ା ଆଙ୍ଗୁଠିଟିକୁ ଯଦି ବାହାର କରିଦିଆଯାଏ ? ଆପଣ ଆଉ ଏବେ ପରି ଲେଖି ପାରିବେ ତ ? ଛୁଞ୍ଚିରେ ସୂତା ଗଳାଇ ପାରିବେ ତ ? ବୁଢ଼ା ଆଙ୍ଗୁଠିଟିକୁ ନ ଲଗାଇ ପାଣି ଗିଲାସଟେ ଉଠାନ୍ତୁ ତ । କୌଣସି ଜିନିଷକୁ ଧରିବା, ଭିଡ଼ିବା ବା ଉଠାଇବା ପାଇଁ ପ୍ରାୟ ସବୁ ଆଙ୍ଗୁଠି କାମରେ ଲାଗନ୍ତି । କିନ୍ତୁ ଏମାନଙ୍କ ଭିତରେ ବୁଢ଼ା ଆଙ୍ଗୁଠିର ଭୂମିକାଟି ବେଶ୍ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ ।

ବୁଢ଼ା ଆଙ୍ଗୁଠିଟି ନ ଥିଲେ ଆପଣ ନିଜର ଅନେକ କୁଶଳତା ହରାଇ ଥାନ୍ତେ । ଏହାର କାରଣ କ'ଣ ହୋଇଥିବ ଭାବିଲେ । ଆପଣ ନିଜ ବୁଢ଼ା ଆଙ୍ଗୁଠିର ଭିତର ପାଖକୁ ଦେଖନ୍ତୁ । ଏଥର ଏହାକୁ ଅନ୍ୟ ଆଙ୍ଗୁଠିଙ୍କର ଟିପରେ ଛୁଆନ୍ତୁ। ଗୋଟିଏ ପରେ ଗୋଟିଏ ହୋଇ ସବୁ ଆଙ୍ଗୁଠିକୁ ଆପଣ ସହଜରେ ଛୁଇଁ ଦେଇ ପାରିବେ । ଗଣିଲା ବେଳେ ସାଧାରଣତଃ ଆପଣ ଆଙ୍ଗୁଠିଗୁଡ଼ିକୁ ଏପରି ଚଳାଇଥାନ୍ତି ନା ?



ଆଚ୍ଛା, ଏଥର ଅନ୍ୟ ଆଙ୍ଗୁଠିରେ ସେପରି ଅନ୍ୟ ଆଙ୍ଗୁଠିଙ୍କ ଟିପଗୁଡ଼ିକୁ ଛୁଇଁବାକୁ ଚେଷ୍ଟା କରନ୍ତୁ ତ ? ଏହା ସୁବିଧାରେ ହୋଇପାରୁଛି ? ଆପଣଙ୍କୁ ଏହା ନୂଆ ଓ ଅଖାଡୁଆ ଲାଗିବ । ବୁଢା ଆଙ୍ଗୁଠିରେ ଅନ୍ୟର ଟିପକୁ ଛୁଇଁବା ଯେତେ ସରଳ ଓ ସ୍ୱାଭାବିକ, ଆର ଆଙ୍ଗୁଠିରେ ବୁଢ଼ା ଆଙ୍ଗୁଠିକୁ ଛୁଇଁବା ସେତିକି ଅଖାଡୁଆ ।

ବରଂ ବୁଢ଼ା ଆଙ୍ଗୁଠିର ଟିପ ଆପେ ଆପେ ଆର ଆଙ୍ଗୁଠି ଆଡ଼କୁ ବଙ୍କେଇ ଯାଉଛି । ଦୁଇଟି ସାଧାରଣ ଆଙ୍ଗୁଠିର ଟିପକୁ ଛୁଆଁଇବାକୁ ବି ଅଧିକ ଚେଷ୍ଟା କରିବାକୁ ପଡୁଛି । ଏହାର କାରଣ ଏହିପରି - ବୁଢ଼ା ଆଙ୍ଗୁଠିଟି



ଅନ୍ୟ ଚାରିଆଙ୍ଗୁଠିର ସାମନାରେ ରହିଛି । ଏହା ସହିତ ମିଶି ଯେ କୌଣସି ଜିନିଷକୁ ସହଜରେ ଉଠାଇ ହୁଏ ।

ଗୋଟିଏ କଥା ଶୁଣିଲେ ଆପଣ ଆଶ୍ଚର୍ଯ୍ୟ ହୋଇଯିବେ । ଜାଣିଛନ୍ତି, ମୋ ଇତିହାସ ସହିତ ସାରା ମଣିଷ ଜାତିର ବିକାଶର ଇତିହାସ ବି



ଯୋଡ଼ା ? ଏହା ବୁଝିବା ପାଇଁ ଆମକୁ ଲକ୍ଷ ଲକ୍ଷ ବର୍ଷ ପଛକୁ ଫେରି ଚାହିଁବାକୁ ହେବ । ସେତେବେଳେ ମଣିଷର ରୂପ ଯଥେଷ୍ଟ ଅଲଗା ଥିଲା । ଜଙ୍ଗଲିଆ ପୃଥିବୀ ଉପରେ ବଣୁଆ ମଣିଷ ସବୁ ଚାଲ ବୁଲ କରୁଥିଲେ । ଆମର ସେହି ପୂର୍ବଜ ଥିଲେ ମାଙ୍କଡ଼ ପରି ।

ସେତେବେଳେ ସେମାନେ ଚାଲିବା ପାଇଁ ମତେ କାମରେ ଲଗାଉଥିଲେ । ମାଙ୍କଡ଼ଙ୍କ ପରି ସେମାନେ ଦୁଇଗୋଡ଼ ଓ ଦୁଇ ହାତରେ ଚାଲୁଥିଲେ । କିନ୍ତୁ କାଳକ୍ରମେ ସେମାନେ ତାଙ୍କର ଦୁଇ ଗୋଡ଼ରେ ଚାଲିବାକୁ ଆରମ୍ଭ କଲେ । ସେବେଠାରୁ ଆମ ହାତମାନଙ୍କୁ ଚାଲିବା କାମରୁ ମୁକ୍ତି ମିଳିଗଲା । କିନ୍ତୁ ଆମେ କ'ଣ ଚୁପ୍ ଚାପ୍ ବସିବା ଅଙ୍ଗ ? ଆମେ ଆହୁରି କେତେ କ'ଣ କାମ କରି ଚାଲିଲୁ ।

ବଣ ମଣିଷ ତା ହାତରେ ଡ଼ାଳ, ପତ୍ର, ଫଳ, ପଥର ଧରିଲା । ଚେରକୁ ଭିଡ଼ି ଗଛର କନ୍ଦାକୁ ଖାଇଲା । ପଥରରେ ବା ବାଡ଼ିରେ ହତିଆର ବନାଇଲା । ଏହାଛଡ଼ା କୌଣସି ଜିନିଷକୁ ଆଖି ପାଖକୁ ନେଇ ଦେଖିବା, ଶୁଣିବା, ଚାଖିବା, ଆଦି କାମ ବି କଲା । ତାକୁ ଆଉ ଆଗ ପରି ସବୁ ଜାଗା ପାଖକୁ ଥୋମଣି ଲମ୍ବାଇବାକୁ ପଡ଼ିଲା ନାହିଁ ।

ଏହା ଫଳରେ ତାର ଥୋମଣିର ଲମ୍ବା ବି କମିବାରେ ଲାଗିଲା । ମୁହଁଟି ଆଗ ଅପେକ୍ଷା ଚେପଟା ହେବାକୁ ଲାଗିଲା । ଏହା ଦ୍ୱାରା ମୁହଁ ସୁନ୍ଦର ଦେଖାଯିବା ସାଙ୍ଗକୁ କାମ ସବୁ ବି ସୁବିଧାରେ କରାଯାଇପାରିଲା । ବିଭିନ୍ନ ଚିଜକୁ ନିରେଖି ଦେଖିବା ଦ୍ୱାରା ତା'ର ମସ୍ତିଷ୍କର ବି ଅଧିକ ବିକାଶ ହେଲା । ଅନ୍ୟ ଜନ୍ତୁଙ୍କ ତୁଳନାରେ ସେ ଅଧିକ ବୁଦ୍ଧିମାନ ବନି ଯାଇପାରିଲା ।

ବୁଦ୍ଧିର ବିକାଶ ହେବାରୁ ମଣିଷ ଗଣିବା ଶିଖିଗଲା । ଆପଣ କହିଲେ ଦେଖି, ଦଶମିକ ଗଣା ପ୍ରଣାଳୀଟି କିପରି ଆରମ୍ଭ ହୋଇଥିବ ? ଏହାର ମୂଳ



କାରଣ ଆମ ହାତର ଆଙ୍ଗୁଠି । ଆମ ଦୁଇ ହାତରେ ଦଶଟି ଆଙ୍ଗୁଠି ଥିବା ଯୋଗୁଁ ଏହି ଦଶ ସଂଖ୍ୟାଟି ଆମ ପାଇଁ ଗୁରୁତ୍ୱପୂର୍ଣ ହୋଇପାରିଲା । ଯଦି ଆଠଟି ଆଙ୍ଗୁଠି ଥା'ନ୍ତା , ତେବେ ହୁଏତ ଆମେ ଅଷ୍ଟମିକ ପ୍ରଣାଳୀ ବ୍ୟବହାର କରୁଥାନ୍ତେ । ଆଜି ଆପଣମାନେ ତ କାଲ୍‌କୁଲେଟର୍ ଆଦି ଦ୍ୱାରା ହିସାବ କରୁଛନ୍ତି । କମ୍ପ୍ୟୁଟର୍ ବି ବ୍ୟବହାର କରୁଛନ୍ତି । ଅବଶ୍ୟ ସବୁ ଚଳାଇବା ପାଇଁ ଆପଣମାନେ ମୋ ଭୂମିକାଟି ବୁଝି ପାରୁଥିବେ । କିନ୍ତୁ ଏତେ ଯନ୍ତ୍ର ବ୍ୟବହାର କରି ବି ମୋତେ ଆପଣମାନେ ଛାଡ଼ି ନାହାନ୍ତି । ଏବେ ବି ହିସାବ କଲାବେଳେ ଆପଣଙ୍କ ଆଙ୍ଗୁଠି ସବୁ ଛାଏଁ ଛାଏଁ ଚଞ୍ଚଳ ହୋଇଯାଆନ୍ତି ।

କେବଳ ଗଣିବା ହିଁ ମୋ କାମ ନୁହେଁ । ମୁଁ ଆହୁରି କେତେ ଗୁରୁତ୍ୱପୂର୍ଣ କାମ କରେ । ମୁଁ ଆପଣଙ୍କର ଅନ୍ୟ ଅଙ୍ଗମାନଙ୍କୁ ବି ଯଥେଷ୍ଟ ସାହାଯ୍ୟ କରିଥାଏ । ଆପଣ ଅନ୍ଧାରରେ ଚାଲିଲାବେଳେ କ'ଣ କରିଥାନ୍ତି ? ସେତେବେଳେ ଆପଣ ମୋ ଆଙ୍ଗୁଠିଙ୍କ ଦ୍ୱାରା ଅଣ୍ଡାଳି ଅଣ୍ଡାଳି ବାଟ ଖୋଜିଥାନ୍ତି । ଚାଷୀମାନେ ତ ହାତରେ ଛୁଇଁ ମାଟିର ଅବସ୍ଥା ଯାଞ୍ଚ କରିଥାନ୍ତି ।

ଦୋକାନରେ ଲୁଗା କନାକୁ ପରଖିଲା ବେଳେ ଆପଣମାନେ ଆଙ୍ଗୁଠିକୁ ବ୍ୟବହାର କରିଥାନ୍ତି । ଯେଉଁ ଲୋକ କଥା କହିପାରନ୍ତି ନାହିଁ, ସେମାନେ ମୋ ଦ୍ୱାରା ଇସାରା ଦେଇ ନିଜର ମନକଥା ଜଣାଇଥାନ୍ତି । ଦୂରତା ଯୋଗୁଁ କାହାର କଥା ଶୁଣା ନଗଲେ ଆପଣ ମୋ ଦ୍ୱାରା ଠାରିଥାନ୍ତି । କଥା ଭଲ ନ ଶୁଭିଲେ ଆପଣ ମତେ କାନ ପାଖରେ ରଖି ଶୁଣିବାକୁ ଚେଷ୍ଟା କରନ୍ତି ।

କାହା ପ୍ରତି ଆଦର ଦେଖାଇଲା ବେଳେ ଆପଣ ଆମ ଦୁଇ ହାତ ସାଥିଙ୍କୁ ଯୋଡ଼ି ନମସ୍କାର କରନ୍ତି । ସାଙ୍ଗ ହୋଇଥିଲେ ହାତ ମିଳାନ୍ତି । ଝଗଡ଼ା ବେଳେ ତ ଏମାନେ ହିଁ ଆପଣଙ୍କ ପାଇଁ ହତିଆର ବା ଢ଼ାଲର କାମ କରିଥାନ୍ତି । କିନ୍ତୁ କାମ କଲାବେଳେ ସବୁ ଭଲରେ ବା ସୁବିଧାରେ ହୋଇଯାଏ ନାହିଁ । ବେଳେ ବେଳେ କେତେକ ଅସୁବିଧା ଦେଖାଦିଏ । ଅନ୍ୟ ଅଙ୍ଗଙ୍କ ତୁଳନାରେ ମୁଁ ବେଶୀ ଅଘାତ ପାଏ ଓ ଖଣ୍ଡିଆ ଖାବରା ହୁଏ । ଦେହ ପାଇଁ



କିଛି ଅସୁବିଧା ଦେଖାଦେଲେ ମୁଁ ହିଁ ଆଗକୁ ମାଡ଼ିଯାଏ । ତେଣୁ ବେଳେ ବେଳେ ଅଧିକା ମାଡ଼ଖାଏ । କେବେ କେବେ ଆମ ଭିତରେ ହାଡ଼ ଭାଙ୍ଗିଯାଏ । ଆପଣ ବେଳେ ବେଳେ ଆମ ଦ୍ୱାରା ବିଭିନ୍ନ କାମ ବି କରାନ୍ତି । ଅତି ଓଜନିଆ ଜିନିଷ ଉଠାଇଲେ ବା ହାତ ଉପରେ ଚାପ ଦେଲେ ଆମର ମାଂସପେଶୀ ଓ ଶିରାଗୁଡ଼ିକ ଆଘାତ ପାଆନ୍ତି । ସେହି ଜାଗାଟିରେ ଅନେକ ଦିନ ଯାଏଁ ଦରଜ ରହେ । ଏହା ମତେ ବେଶୀ ବାଧେ । ଆପଣଙ୍କୁ ବି ଅସୁବିଧା ହୁଏ ।

ହଁ ଆଉ ଏକ ମଜା କଥା କହିଦିଏ । କେଉଁ ଜାଗାରେ ଆପଣ କେବେ ଆଙ୍ଗୁଠି ଛାପ ଦେଇଛନ୍ତି ? ଆରେ, ଆପଣ ତ ଏବେ ପଢ଼ି ଶିଖିଲେ । ଆଗରୁ ତ ଆପଣଙ୍କ ଦସ୍ତଖତ କହିଲେ ଟିପ ଚିହ୍ନ ହିଁ ଦେଉଥିଲେ । ମୁଁ ସେ କଥା କହୁନାହିଁ । ଆସନ୍ତୁ ଏକ ମଜା କଥା ଦେଖିବା । ଡ଼ାକ ଘରେ କଳା କାଳି ଅଛି । ଆପଣ ଆପଣଙ୍କ ସବୁ ଆଙ୍ଗୁଠିକୁ ଏହା ଦେହରେ ଚପାଇ ଆଣନ୍ତୁ । ଧଳା କାଗଜଟିଏ ଉପରେ ଆପଣ ସବୁ ଆଙ୍ଗୁଠିର ଟିପ ଚିହ୍ନ ଲଗାନ୍ତୁ । ଆଉ ଜଣେ ସାଥିଙ୍କୁ ବି ଏପରି କରିବାକୁ କୁହନ୍ତୁ ।

ଏଥର ଦୁହିଁଙ୍କ ଟିପ ଚିହ୍ନକୁ ତୁଳନା କରନ୍ତୁ । ଦୁହିଁଙ୍କ ଛାପ ଏକା ପ୍ରକାରର ପରି ଲାଗୁଛି ନା ? ଟିକେ ନିରେଖି ଦେଖନ୍ତୁ । ଦୁହିଁଙ୍କ ଛାପ ବେଶ୍ ଅଲଗା ଧରଣର । ଦୁନିଆରେ ସବୁ ଲୋକଙ୍କର ଟିପ ଚିହ୍ନ ଅଲଗା ଅଲଗା । କଥାଟି ଆପଣଙ୍କୁ ଆଶ୍ଚର୍ଯ୍ୟଜନକ ଲାଗୁଥାଇ ପାରେ । କିନ୍ତୁ ଏହା ନିରାଟ ସତ । ଦୁନିଆରେ ଏ ଯାଏଁ ଯେତିକି ମଣିଷ ଜନ୍ମ ନେଲେଣି ସେ ସମସ୍ତଙ୍କ ଆଙ୍ଗୁଠି ଛାପ ଅଲଗା ଥିଲା । କାଲିକୁ ଯିଏ ବି ଜନ୍ମ ନେବେ, ସେମାନଙ୍କ ଟିପ ଛାପ ବି ଅଲଗା ରକମର ହେବ । ଏଥିପାଇଁ ଟିପଚିହ୍ନକୁ ପ୍ରତ୍ୟେକ ମଣିଷର ସ୍ୱତନ୍ତ୍ର ଚିହ୍ନ ରୂପେ ଦେଖାଯାଏ ।

ପୋଲିସ୍ ବିଭାଗରେ କେତେ ଜଣ ହାତ ଛାପ ବିଶେଷଜ୍ଞ ରହିଥାନ୍ତି । କେଉଁଠି ଚୋରି ବା ଅନ୍ୟ ଅପରାଧ ଘଟିଲେ ସେମାନେ ଜାଗାଟିରେ ଅପରାଧୀର ହାତ ଛାପକୁ ପଢ଼ିବାକୁ ଚେଷ୍ଟା କରନ୍ତି । ଏଥିରୁ ବି ଅପରାଧୀଙ୍କୁ ନିର୍ଦ୍ଦିଷ୍ଟ ଭାବରେ ଧରିହୁଏ ।



ଆଉ ଏକ କଥା ଆପଣ ଲକ୍ଷ୍ୟ କରିଛନ୍ତି କି ? ଅନ୍ୟ ଜାଗା ଅପେକ୍ଷା ପାପୁଲିରୁ ଅଧିକ ଝାଳ ବାହାରେ । ଏହାର କାରଣ ଅଛି । ଆପଣଙ୍କ ଦେହରେ ଝାଳ ଗ୍ରନ୍ଥିଙ୍କ ସଂଖ୍ୟା ହାତପାପୁଲିରେ ସବୁଠୁ ବେଶୀ ହୋଇଥାଏ । ମଣିଷର ପୂର୍ବଜମାନେ ଆଗରୁ ମାଙ୍କଡଙ୍କ ପରି ରହୁଥିଲେ । ସେତେବେଳେ ଏହି ଓଦାଳିଆ ପାପୁଲି ଯୋଗୁଁ ସେମାନେ ଗଛ ଡ଼ାଳକୁ ଜୋର୍‌ରେ ଜାବୁଡ଼ି ଧରି ପାରୁଥିଲେ । ସେବେଠାରୁ ମୋ ପାପୁଲି ଗୁଡ଼ିକରେ ଏତେ ବେଶୀ ଝାଳ ଗ୍ରନ୍ଥି ରହିପାରୁଛି ।

ମତେ ନିଜେ ନିଜର ଗୁଣ ଗାଇବାକୁ ଭଲ ଲାଗେନାହିଁ । କିନ୍ତୁ ମୁଁ ଏଠାରେ ମୋର ବଡ଼େଇ କରୁନାହିଁ । ସତରେ ମୁଁ ଯାହା ଯାହା କରିପାରେ ତାହା ହିଁ ଆପଣଙ୍କୁ ବୁଝାଉଛି । ଆପଣତ ଏବେ ଅନୁଭବ କରିବେଣି ଯେ, ମୁଁ ଆପଣଙ୍କର ଏକ ଦରକାରୀ ଅଙ୍ଗ । ନୁହେଁ କି ?



ଆଉ ଏକ କଥାରୁ ଆପଣ ମୋର ଉପଯୋଗିତାକୁ ବି ବୁଝି ପାରିବେ । ଆପଣମାନେ ନିଜର କେତେକ କଥାକୁ ଲକ୍ଷ୍ୟ କରନ୍ତୁ । କେତେକ ସମୟରେ ଆପଣ ମୋ ଆଙ୍ଗୁଠିଗୁଡ଼ିକୁ ନେଇ କେତେ କଥା କହି ଚାଲିଥାନ୍ତି । ସାଥି ହାତ ମିଳାଅ, ଖାଲି ହାତରେ ଲେଉଟିବା, ହାତ ଟେକିବା, ଆଙ୍ଗୁଠି ଦେଖାଇବା, ଆଦି ଏଥିରୁ କିଛି ଉଦାହରଣ । ହାତ ଓ ଆଙ୍ଗୁଠିକୁ ନେଇ ଅନେକ ପ୍ରବାଦ ଓ ଢ଼ଗଢମାଳି ବି ରହିଛି । ''ହାତେ ମାପି ଚାଖଣ୍ଡେ ଚାଲ'', ''ଚକ ଗଡ଼ିଲେ ବାର ହାତ'' ଆଦି ।

## ହାତ ହିଁ ଦୁନିଆକୁ ଗଢ଼ିଛି

ପୃଥିବୀ ଉପରେ କେତେ ରକମର ଜୀବନ ଉଧେଇଛି । ବିବିଧ ଜୀବଜନ୍ତୁ, ଗଛଲତା, ଚଢ଼େଇ, କୀଟ ସମସ୍ତେ ଏଠାରେ ବଦଳି ଚାଲିଛନ୍ତି । କିନ୍ତୁ ଏ ସଭିଙ୍କ ଭିତରେ ମଣିଷର ସ୍ଥାନ ସ୍ୱତନ୍ତ୍ର । ଆଜି ସେ ସାରା ଧରଣୀକୁ ନିଜ ହାତରେ ରଖିଛି । କିନ୍ତୁ ଏହା କିପରି ସମ୍ଭବ ହୋଇପାରିଲା ? ଆସନ୍ତୁ ଏ ବିଷୟରେ ଆଲୋଚନା କରିବା । ମଣିଷ ପାଖରେ ଏମିତି କ'ଣ ଅଛି ଯାହା ଦ୍ୱାରା ସେ ଏତେ ବଳୁଆ ଓ ପ୍ରଭାବଶାଳୀ ହୋଇ ପାରିଲା ।

ଗୋଟିଏ ସମୟରେ ମଣିଷ ଏତେ ଶକ୍ତିଶାଳୀ ନଥିଲା । ସେତେବେଳେ ଜଙ୍ଗଲରେ ରହୁଥିବା ଜୀବଜନ୍ତୁ ବା ଆକାଶରେ ଉଡୁଥିବା ପକ୍ଷୀଙ୍କର ଯେତିକି ଅଧିକାର ଓ ସ୍ୱାଧୀନତା ଥିଲା, ମଣିଷର ବି ସେତିକି ହିଁ ଥିଲା । କିନ୍ତୁ ଏହା କିପରି ଏତେ ବଦଳିଗଲା ? ଆମେ ଜାଣିଛେ, ରାତିକ ଭିତରେ କିଛି ବି ବିରାଟ ପରିବର୍ତ୍ତନ ହୋଇଯାଏ ନାହିଁ । ଏଥିପାଇଁ କୋଟି କୋଟି ବର୍ଷ ଲାଗିଯାଇଥାଏ । ସଜୀବ ପ୍ରାଣୀମାନେ ଇଚ୍ଛା ଅନୁସାରେ ବଦଳି ପାରନ୍ତି ନାହିଁ । କେବଳ ନୂଆ ପରିସ୍ଥିତି ସହ ଖାପ ଖୁଆଇ ଚଳିବା ପାଇଁ ସେମାନେ ବଦଳିବାକୁ ବାଧ୍ୟ ହୁଅନ୍ତି ।

ମଣିଷ ପାଇଁ ବି ଏପରି ହୋଇଥିବ । କିନ୍ତୁ ମଣିଷ କେଉଁ ପ୍ରକାରର ଜୀବ- ସମତଳର , ଜଙ୍ଗଲର, ନା ପାହାଡ଼ର ? ଜଙ୍ଗଲରେ ରହୁଥିବା



ମଣିଷକୁ ଆମେ 'ବଣ ମଣିଷ' ଓ ଦଳରେ ରହୁଥିବା ମଣିଷଙ୍କୁ ଆମେ 'ଦଳୁଆ ମଣିଷ' କହିପାରିବା କି ? ଏହା ଜମା ନୁହେଁ । ଯେଉଁ ମଣିଷ ଜଙ୍ଗଲରେ ରହିପାରେ, ସେ ତ ସମତଳରେ ବି ରହିପାରେ । ବରଂ ସେ ଯେଉଁଠି ସୁଖ, ଶାନ୍ତି ଓ ସୁରକ୍ଷା ପାଇବ, ସେହି ଜାଗାଟିକୁ ହିଁ ପସନ୍ଦ କରିବ ।

ମଣିଷ ଯେ କୌଣସି ଜାଗାରେ ରହିପାରେ । ପୃଥିବୀ ଉପରେ ଏପରି ପ୍ରାୟ ଜାଗା ନାହିଁ ଯେଉଁଠି ମଣିଷ ପହଞ୍ଚି ପାରୁନାହିଁ । କେଉଁଠି ବି ଲେଖାଯାଇ ନପାରେ- "ଏଠାରେ ମଣିଷ ରହିବା ନିଷେଧ" । ଏହି ମଣିଷ ଆଣ୍ଟାର୍କଟିକାର ବରଫମୟ ଦେଶରେ ଚଳିପାରୁଛି । ଦରକାର ବେଳେ ସେ ଉତ୍ତପ୍ତ ମରୁଭୂମିରେ ବି ରହିପାରୁଛି । ସେ ପ୍ରତ୍ୟେକ ଜାଗାରେ ଚଳିବାର କିଛି ନା କିଛି ବାଟ୍ ବାହାର କରି ନେଉଛି ।

କୌଣସି ଜଙ୍ଗଲ ବା ଅପନ୍ତରା ଜାଗାରେ ଚଳିବା ପାଇଁ ତାକୁ ନିଜ ଗୋଡ଼, ହାତ, ବା ଦାନ୍ତକୁ ବଦଳାଇବାକୁ ପଡୁନାହିଁ । ତା ଦେହରେ ପଶୁ ପରି ଲମ୍ବା ଲୋମ ନାହିଁ । ତଥାପି ଉତ୍ତପ୍ତ ମରୁଭୂମି ଠାରୁ, ଶୀତଳ ମେରୁ

ଅଞ୍ଚଳରେ ବି ଚାଲିଯାଇ ପାରୁଛି । ଥଣ୍ଡାରୁ ରକ୍ଷା ପାଇବା ପାଇଁ ସେ ଚମଡ଼ାର ମୋଟା କୋଟ୍, ଟୋପି, ଜୋତା ପିନ୍ଧିନେଉଛି ।

ଆଜି ମଣିଷ ଘୋଡ଼ା ଠାରୁ ବି ଦ୍ରୁତ ବେଗରେ ଛୁଟି ଯାଇ ପାରୁଛି । କିନ୍ତୁ ଏଥିପାଇଁ ତା ଦେହକୁ ସେମିତି କିଛି ଖଟିବାକୁ ପଡୁନାହିଁ । ସେ ଆଜି ମାଛ



ପରି ପାଣିରେ ପହଁରି ପାରୁଛି । ଚଢ଼େଇ ପରି ତା'ର ଡ଼େଣା ବା ପର ଉଠିବା ଲୋଡ଼ା ହେଉ ନାହିଁ । ନିଜକୁ ନ ବଦଳାଇ ସେ ଆଜି ଅନେକ ଅସମ୍ଭବ କାମକୁ କରିପାରୁଛି । କିନ୍ତୁ ଅନ୍ୟ ପଶୁପକ୍ଷୀ ତା' ପରି ଏସବୁ କାମ କରିପାରନ୍ତି ନାହିଁ ।

ପଶୁ ଓ ପକ୍ଷୀମାନେ ପୂର୍ଣତଃ ପ୍ରକୃତି ଉପରେ ନିର୍ଭର କରି ଚଳନ୍ତି । ଗଣିତର ଯେ କୌଣସି ସମସ୍ୟାର ସମାଧାନ କରିବାକୁ ହେଲେ ବିଭିନ୍ନ ସର୍ତ୍ତ ଅନୁସାରେ ହିସାବ କରିବାକୁ ପଡ଼ିଥାଏ । ପ୍ରକୃତିକୁ ବି ଏକ ପ୍ରକାର ଗଣିତ ବୋଲି କୁହା ଯାଇପାରେ । ଏଠାରେ ପ୍ରତ୍ୟେକ ଜୀବ ଗୋଟିଏ ଲେଖାଏଁ ସମସ୍ୟା ।

ଏ ଜୀବଟିଏ ଜିଇଁ ରହିବା ଅର୍ଥ, ସମସ୍ୟାଟିକୁ ସମାଧାନ କରିବା, ପ୍ରତ୍ୟେକ ଜୀବନ ଏହାକୁ ସଫଳତାର ସହ ତୁଲାଇ ଚାଲେ। ସମସ୍ୟାଗୁଡ଼ିକର ସର୍ତ୍ତ ହେଉଛି- ପ୍ରତ୍ୟେକ ଜୀବ ଜିଇଁବା ପାଇଁ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତି ଲୋଡ଼ା ହୁଏ । ପରିସ୍ଥିତି ସହ ଖାପ ଖୁଆଇ ସମସ୍ୟାଗୁଡ଼ିକୁ ସୁଧାରିବାର ଉତ୍ତର ହେଉଛନ୍ତି : ପଂଝା, ଗୋଡ଼, ଡ଼େଣା, ଥଣ୍ଟ, ନଖ, ଜୀବର ପ୍ରକୃତି ଓ ଚାଲିଚଳଣ ।

ପ୍ରାଣୀଟିକୁ ରହିବା ପାଇଁ ଏକ ନିର୍ଦ୍ଦିଷ୍ଟ ଜାଗା ଓ ଜଳବାୟୁ ବି ବାଛିବାକୁ ପଡ଼େ । ଲୁଣି ପାଣି ବା ମିଠାପାଣି, ଆକାଶ ବା ସ୍ଥଳଭାଗ, ଥଣ୍ଡା ବା ଗରମ ଅଞ୍ଚଳ, ଜଙ୍ଗଲ ନା ସମତଳ, ସମୁଦ୍ରତଟ ନା ସମୁଦ୍ରରେ, ସମୁଦ୍ର ଉପରେ ନା ଗହୀରରେ ଏମିତି ଅନେକ ଦିଗରୁ ବାଛିବାକୁ ହୁଏ । ଦ୍ୱିତୀୟ ଆବଶ୍ୟକତା ହେଉଛି- ପ୍ରାଣୀଟିର ପଡ଼ୋଶୀ କିଏ ? ସେମାନଙ୍କ ଚାଲିଚଳଣ ଅନୁସାରେ ଜୀବଟି ତା'ର ଜିଇଁବାର ବାଟ ବାଛେ । ଅନେକ ହିଂସ୍ର ଜୀବଙ୍କ ଗହଳରେ



ଗାଈ ବା ହରିଣ ଭଳି ଜୀବଟିର ସ୍ଥାନ ନଥାଏ । ତେଣୁ ସେ ତା ପାଇଁ ଏକ ସୁରକ୍ଷିତ ଜାଗା ବାଛେ ।

ପଶୁପକ୍ଷୀମାନେ ନିଜର ପରିବେଶ ସହ ପୂରାପୂରି ଯୋଡ଼ା । କିନ୍ତୁ ମଣିଷ ଏଥିରେ ଅନେକାଂଶରେ ଓଲଟା । ସେ ନିଜ ଆବଶ୍ୟକତା ଅନୁସାରେ ବା ପରିବେଶକୁ ସଜାଡ଼ି ପାରେ ଓ ବଦଳାଇପାରେ । ସେ ନିଜର ଦୁନିଆଁକୁ ଗଢ଼ିପାରେ । ଅନେକ ସମୟରେ ସେ ପ୍ରକୃତିର ଏହି ବିରାଟ ପସ୍ତକକୁ ନିଜ ହାତକୁ ନେଇଯାଏ ଓ ନିଜ ଆବଶ୍ୟତା ଅନୁସାରେ ସେ ଏହାର ସର୍ତ୍ତଗୁଡ଼ିକୁ ବି ବାଗେଇଦିଏ । ତାକୁ ଯାହା ସୁଖ ଲାଗେ ନାହିଁ, ସେ ତାକୁ ବଦଳାଇବାରେ ଲାଗିପଡ଼େ ।

ପ୍ରକୃତି ପୁସ୍ତକ କହେ- ''ମରୁଭୂମିରେ ପାଣି କମ୍ ଥାଏ ।'' କିନ୍ତୁ ମଣିଷ ମରୁ ଇଲାକାରେ କେନାଲ ଖୋଳି ପାଣିର ଧାର ପହଞ୍ଚାଇ ଦିଏ । ଅତଏବ ଏଠାରେ ବହିଟିର ସେହି ଧାଡ଼ିଟିକୁ ବଦଳାଇବାକୁ ପଡ଼େ ।

ପ୍ରକୃତି କହେ, ''ଦେଶର ଅମୁକ ଜାଗାରେ ମାଟି ଅନୁର୍ବର । ଏଠାରେ ଚାଷ କରାଯାଇ ପାରିବ ନାହିଁ ।'' କିନ୍ତୁ ମଣିଷ ସାର ମିଳାଇ ସେଠାକାର ମାଟିରେ ସୁନାର ଫସଲ ଫଳାଇଦିଏ । ପ୍ରକୃତିର ସିଦ୍ଧାନ୍ତ ସେଠାରେ କାଟ ଖାଇଯାଏ ।

ପ୍ରକୃତି କହେ''ଶୀତ ଦିନେ ଥଣ୍ଡା ହୁଏ । ରାତିରେ ଚାରିଆଡ଼େ ଅନ୍ଧାର ହୋଇଯାଏ ।'' କିନ୍ତୁ ମଣିଷ ଏହି ଶବ୍ଦଗୁଡ଼ିକୁ ବିଲ୍‌କୁଲ ଖାତିର ହିଁ କରେ ନାହିଁ । ସେ ଥଣ୍ଡାକୁ ଗରମ କରିଦେଇପାରେ । ଅନ୍ଧାରକୁ ହଟାଇ ଆଲୋକ ବି ଭରି ଦେଇପାରେ ।

ମଣିଷ ଲଗାତାର ତାର ପରିବେଶକୁ ବଦଳାଇ ଚାଲିଥାଏ । ଏହି ବଦଳାଧାରା ଲକ୍ଷ ଲକ୍ଷ ବର୍ଷ ଧରି ଚାଲିଆସୁଛି । କିନ୍ତୁ ମଣିଷ ଏହା କିପରି କରିପାରିଲା ? ସେ ତା'ର ଏହି କ୍ଷମତା କେଉଁଠୁ ପାଇଲା ? ଏହାକୁ ତୁଳନା କରିବା ପାଇଁ ଆମେ ଏହାର ପାଖ ଜୀବ ସିମ୍ପାଞ୍ଜିକୁ ଦେଖିବା ।

# ସିମ୍ପାଞ୍ଜି କ'ଣ ମଣିଷ ବନିପାରିବ ?

ଆପଣ ସିମ୍ପାଞ୍ଜିଙ୍କ ବିଷୟରେ ଶୁଣିଥିବେ । କେବେ ଏହାକୁ ଚିଡ଼ିଆଖାନାରେ ଦେଖି ବି ଥିବେ । ଏହାକୁ କେବେ ଭଲ କରି ଲକ୍ଷ୍ୟ କରିଛନ୍ତି ? ଏହାର ମଣିଷ ପରି ବିଭିନ୍ନ କାମ କରିବା ଦେଖିବାକୁ ଭାରି ମଜା ଲାଗେ । କିନ୍ତୁ ସେମାନଙ୍କୁ କ'ଣ ମଣିଷ ପରି ଚଲାବୁଲା, ଭାବିବା, କହିବା ଆଦି ଶିଖାଯାଇ ପାରିବ ?

ଅନେକ ବର୍ଷ ତଳେ ବିଖ୍ୟାତ ପଶୁ ଶିକ୍ଷକ ଭ୍ଲାଦିମିର୍ ଦୁରୋବ ଏପରି ଏକ ପରୀକ୍ଷା ଚଳାଇଥିଲେ । ତାଙ୍କର ମିମୁସ୍ ନାମକ ଏକ ସିମ୍ପାଞ୍ଜି ଥିଲା । କେତେ ମାସ ଧରି ସେ ତାକୁ ମଣିଷ ପରି ଆଚରଣ ଶିଖାଇବାରେ ଲାଗିଲେ । ମିମୁସ୍ ଖୁବ୍ ଶୀଘ୍ର ଶିଖି ଯାଉଥିଲା । ସେ ଚାମଚରେ ଖାଇଲା, ରୁମାଲରେ



ମୁହଁ ପୋଛିଲା । ଚଉକିରେ ବସିଲା । ଟେବୁଲ ଉପରେ ନ ପକେଇ ଝୋଳ ଆଦି ପିଇଲା । ବରଫଗାଡ଼ିରେ ବସିଲା । ଠିକ୍ ମଣିଷ ପରି ଓହ୍ଲାଇଲା । କିନ୍ତୁ....ସେ ମଣିଷ ହୋଇପାରିଲା ନାହିଁ ।

ଏଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । କାରଣ ମଣିଷ ଓ ମାଙ୍କଡ଼ଙ୍କ ରାସ୍ତା କେତେ ଲକ୍ଷ ବର୍ଷ ଆଗରୁ ହିଁ ଅଲଗା ହୋଇସାରିଛି । ମଣିଷଙ୍କ ପୂର୍ବଜମାନେ ଲକ୍ଷ ଲକ୍ଷ ବର୍ଷ ତଳେ ଗଛ ଉପରୁ ତଳକୁ ଓହ୍ଲାଇ ଆସିଥିଲେ । ସେମାନେ କ୍ରମେ ପଛ ଦୁଇ ଗୋଡ଼ରେ ସିଧା ଠିଆ ହେବା ଶିଖିଗଲେ ।

ବିଭିନ୍ନ କାମ କରିବା ପାଇଁ ହାତ ଦୁଇଟି ମୁକ୍ତ ହୋଇଗଲା । କିନ୍ତୁ ସିମ୍ପାଞ୍ଜିଙ୍କ ପୂର୍ବଜମାନେ ସବୁବେଳେ ଗଛ ଉପରେ ହିଁ ରହିଲେ । ସେମାନେ ନିଜକୁ ଗଛ ଉପରେ ଚଳିବାକୁ ଅଧିକ ସୁବିଧା ମନେ କଲେ । ସେମାନଙ୍କ ଦେହ ବି ପ୍ରସ୍ତୁତ ରହିଲା । ଏଥିଯୋଗୁଁ ସିମ୍ପାଞ୍ଜିଙ୍କ ଦେହ ମଣିଷ ପରି ହେଲା ନାହିଁ । ଏମାନଙ୍କ ହାତ, ଗୋଡ଼, ମସ୍ତିଷ୍କ ଓ ମୁହଁ ଆଦି ବେଶ୍ ଅଲଗା ହେଲା ।

ସିମ୍ପାଞ୍ଜି ହାତକୁ ଲକ୍ଷ୍ୟ କରିବା । ମଣିଷ ହାତ ଠାରୁ ଏହା ବେଶ୍ ଅଲଗା ଦେଖାଯାଏ । ସିମ୍ପାଞ୍ଜିର ବୁଢ଼ା ଆଙ୍ଗୁଠି ତା'ର କାଣି ଆଙ୍ଗୁଠି ଠାରୁ ବି ଛୋଟ । ଆମ ହାତ ପରି ଅନ୍ୟ ଆଙ୍ଗୁଠି ସହ ଏହାର ବୁଢ଼ା ଆଙ୍ଗୁଠି ସାମନା ସାମନି ନଥାଏ ।

ମଣିଷ ହାତରେ ବୁଢ଼ା ଆଙ୍ଗୁଠିଟି ହିଁ ସବୁଠୁ ମହତ୍ତ୍ୱପୂର୍ଣ୍ଣ ହୋଇଥାଏ । ଅନ୍ୟ ଚାରୋଟିଯାକ ଆଙ୍ଗୁଠିଙ୍କ ସହ ମିଶି ବା କେଉଁ ଗୋଟିକ ସହିତ ଅଲଗା ପ୍ରକାର ସେ କାମ କରିପାରେ । ଏଥିପାଇଁ ହିଁ ମଣିଷର ହାତ ଅଧିକ ଦକ୍ଷ ହୋଇପାରିଛି । ଅନେକ ଜଟିଳ ଯନ୍ତ୍ର ଓ ହତିଆର ଅପେକ୍ଷା ଏହା ଅଧିକ ନିପୁଣ ଓ କାମିକା ବନିପାରିଛି ।

ସିମ୍ପାଞ୍ଜିଟିଏ ଗଛରୁ ଫଳ ତୋଳିବାକୁ ଆପଣ କେବେ ଦେଖିଛନ୍ତି ? ପ୍ରଥମେ ସେ ଡାଳଟିକୁ ହାତରେ ଧରେ । ତା'ପରେ ସେ ଫଳଟିକୁ ଗୋଡ଼ର



ଆଙ୍ଗୁଠି ସାହାଯ୍ୟରେ ତୋଳେ । ଭୂଇଁ ଉପରେ ଚାଲିଲା ବେଳେ ତା ହାତରେ ଆଙ୍ଗୁଠି ଗୁଡ଼ିକ ମୋଡ଼ି ହୋଇ ରହିଥାଏ । ଏହା ଉପରେ ତା ଦେହର ଭାର ରହେ । ଏହାର ଅର୍ଥ ସେ ସବୁବେଳେ ନିଜ ହାତକୁ ଗୋଡ଼ ପରି ଓ ଗୋଡ଼କୁ ହାତ ପରି ବ୍ୟବହାର କରିଥାଏ ।

ଆମ ପୂର୍ବଜମାନେ ଯେତେବେଳେ ଗଛ ଉପରେ ରହୁଥିଲେ, ସେମାନେ ଏ ଦିଗରୁ ଅଲଗା ଥିଲେ । ସେମାନେ କ୍ରମେ ନିଜ ଗୋଡ଼ ହାତକୁ ଅଲଗା କାମରେ ଲଗାଇବାର ଶିଖିଗଲେ । ହାତ ସାହାଯ୍ୟରେ ସେମାନେ ଗଛର ଫଳ ତୋଳିଲେ । ଗଛ ଉପରେ ନିଜର ଘର ବନାଇଲେ ।

ଫଳ ପରିକା ଏହି ହାତରେ ସେମାନେ ବାଡ଼ି ବା ପଥର ବି ଧରି ପାରିଲେ । ବାଡ଼ି ବା ପଥର ଧରିଥିବା ହାତଟିଏ ସାଧାରଣ ହାତ ଠାରୁ ନିଶ୍ଚୟ ଅଧିକ ଲମ୍ବା ଓ ମଜବୁତ ହୋଇଯାଏ । ଏହାର ଅର୍ଥ ବୁଝି ପାରୁଛନ୍ତି ତ ? ଅର୍ଥାତ, ଏହା ବାଡ଼ି ସାହାଯ୍ୟରେ ଅଧିକ ଦୂର ଯାଏଁ ପହଞ୍ଚି ପାରେ ଓ ପଥର ସାହାଯ୍ୟରେ ଆହୁରି ଟାଣୁଆ କାମ ବି କରିପାରେ ।

ଯେଉଁ ଫଳକୁ ହାତରେ ଯେତେ ଚାପିଲେ ବି ଭାଙ୍ଗିହେବ ନାହିଁ, ପଥର ଦ୍ୱାରା ସହଜରେ ଏହାକୁ ଫଟା ଯାଇପାରିବ । ମାଟି ତଳୁ ମିଠା କନ୍ଦାକୁ ବାଡ଼ି ଦ୍ୱାରା ଖୋଳା ଯାଇପାରେ । ଉଚ୍ଚ ଗଛରୁ ଫଳଟିଏକୁ ଏଥିରେ ସହଜରେ ତୋଳା ଯାଇପାରେ । ଏହା ମଣିଷକୁ ଯଥେଷ୍ଟ ସାହାଯ୍ୟ କଲା । ଏଗୁଡ଼ିକୁ ହତିଆର ରୂପେ କାମରେ ଲଗାଇ ମଣିଷ ଅଧିକରୁ ଅଧିକ କାମ ସୁବିଧାରେ କରି ଦେଇପାରିଲା ।

ତାର ବଳ ବି ଆଗଠୁ ବେଶୀ ବଢ଼ିଗଲା । ବାଡ଼ି ଦ୍ୱାରା ସେ ଗଛର ମୂଳ, କନ୍ଦା ଆଦିକୁ ଖୋଳି ଖାଇପାରିଲା । ଗଛରୁ ଫଳ ତୋଳି ସହଜରେ ଖାଇଲା । ବେଳକୁ ବେଳ ହାତ ଯେତିକି ବ୍ୟସ୍ତ ରହିଲା, ସେ ଅନୁସାରେ ତାକୁ ଏଣେ ତେଣେ ଯିବାକୁ ପଡ଼ିଲା । ଫଳରେ ତା'ର ଗୋଡ଼ ଦୁଇଟି ବି ସେତିକି ଅଧିକ ବ୍ୟସ୍ତ ରହିଲା । ସ୍ୱାଧୀନ ଭାବରେ ଗୋଡ଼ଗୁଡ଼ିକୁ ଅଧିକ ଚାଲିବାକୁ ପଡ଼ିଲା ।

ଏହି ପ୍ରକାର ହାତ ଯୋଗୁଁ ଗୋଡ଼ଗୁଡ଼ିକ ଅଧିକ କାମ କରିବାକୁ ବାଧ ହେଲେ । ତେଣେ ଗୋଡ଼ଗୁଡ଼ିକ ମଧ୍ୟ ନୂଆ ନୂଆ କାମ କରିବା ପାଇଁ ହାତକୁ

ଅଧିକ ସ୍ୱାଧୀନତା ଦେଲେ । କ୍ରମେ ମଣିଷର ମୁକ୍ତ ହାତ ଅଧିକା ଉପଯୋଗୀ କାମ ସବୁ କରି ଜୀବନର ପ୍ରତିକୂଳ ପରିସ୍ଥିତିର ମୁକାବିଲା କରି ପାରିଲେ ।

ତାର ଏହି କାମ କରିବାର ପରମ୍ପରା ଆଜି ବା କାଲିର ନୁହେଁ । ଏହା ଲକ୍ଷ ଲକ୍ଷ ବର୍ଷ ଧରି ନିରନ୍ତର ଏପରି ଚାଲିଛି । ହାତ ପାଆନ୍ତା ଜିନିଷକୁ ନେଇ ନିଜ ହାତରେ ସେ ଏମିତି କେତେ ପରଖ ଚଳାଇ ଆସୁଛି । ଆମେ ମଣିଷର ଇତିହାସକୁ ଏହି କାମ ବା ଶ୍ରମର ଇତିହାସ ବୋଲି ବି କହିପାରିବା ।

ଖେତରୁ ଧାନ, କଳରୁ ଉତ୍ପାଦନ, ପାହାଡ଼ କଟା, କେନାଲ ଖୋଳା, ରାସ୍ତା ତିଆରି, ଏମିତି ଯେତେ କାମ ଚାଲିଛି, ଏସବୁରେ ମୂଲିଆ ମଣିଷର ହାତ ଲାଗୁଛି । ସବୁଠାରେ ସେହି ଶିଳ୍ପୀ ହାତ ହିଁ ମଣିଷର ସ୍ୱପ୍ନ ଓ ଦୁନିଆକୁ ସୁନ୍ଦରରୁ ସୁନ୍ଦରତର କରି ଚାଲିଛି । ତେଣୁ ଆମେ କହିପାରିବା ।

କିଏ ବନେଇଲା କହିଲ କୋଣାରକ ମନ୍ଦିର ?
କଳା ମଚମଚ ପଥର ଦିଶେ କେଡ଼େ ଡ଼ଉଲ ।
ବନେଇଲା ବାଲା ନଥିଲା ଜଣେ ରାଜା କି ମନ୍ତ୍ରୀ,
ଇତିହାସ ବହି ଗାଏନି କେବେ ତା'ର କିରତୀ ।
ବନେଇଲା ଆମ ଶିଳ୍ପୀ ସାଥି,
ମୁଣ୍ଡ ଖଟାଇ ସେ ହାତ ଲଗାଇ ।
କାମର ତାହାର ତୁଳନା ନାହିଁ ।

# ଆମର ହାତ

ପଥର ପରି ସେ ତୀକ୍ଷ୍ଣ
ଜେଲ୍‌ରେ ଗାଇବା ଗୀତ ପରି ଉଦ୍ଧାମ
ବୋଝବୁହା ପଶୁଙ୍କ ପିଠି ପରି ଶକ୍ତ

**ଆମର ହାତ**

ଭୋକରେ ସଢ଼ିଲା ପିଲା ମୁହଁ ପରି ଅଶାନ୍ତ

**ଆମର ହାତ**

ମହୁମାଛି ପରି ଦକ୍ଷ ଓ କର୍ମଠ
ଦୁଧଭରା ସ୍ତନ ପରି ଭାରି
ପ୍ରକୃତି ପରି ସେ ଉଦାର
ନିବିଡ଼ ବନ୍ଧୁତ୍ୱ ପାଇଁ ମଧୁର ଓ ନରମ
ଏହି ଦୁନିଆ ବଳଦର ଶିଙ୍ଗ ପରି ଉଧେଇ ଉଠିନି
ଏ ଦୁନିଆ ଆମ ହାତ ଦ୍ୱାରା ହିଁ ଗଢ଼ି ଉଠୁଛି ।

ମୂଳ ହିନ୍ଦୀ - **ନାଜିମ୍ ହିକମତ୍**

